# ଜଳ ଆମ ଜୀବନ



ଅଧ୍ୟାପକ ଦାମୋଦର ପରିଡ଼ା

ପ୍ରକାଶକ :
ଶିବରାମ ମହାପାତ୍ର
ସଦ୍‌ଗ୍ରନ୍ଥମନ୍ଦିର
ବାରାକ୍‌ସରୋଡ଼, ବ୍ରହ୍ମପୁର

ମୁଦ୍ରକ :
ମହାପାତ୍ର ବ୍ରଦର୍ସ,
ବ୍ରହ୍ମପୁର

ମୁଦ୍ରଣ : ୧୯୮୮

ମୂଲ୍ୟ : ଟ ୫-୦୦

## ଅଜାଙ୍କ ଶୋଷ ମେଣ୍ଟିଲା

ବୈଶାଖ ମାସ ଦିନ ଦି' ପହର ।

ପଧାନ ଅଜା ତର ତର ହୋଇ ପାଦ ପକାଇଲେ । ଗାଁ ମୁଣ୍ଡ ବରଗଛ ପାଖରେ ପହଞ୍ଚିବାକୁ ପଡ଼ିବ । ବସ୍ ବେଳ ହୋଇଗଲାଣି । ଶୀଘ୍ର ନ ପହଞ୍ଚିଲେ ବସ୍ ଚାଲିଯିବ । ଅଜାଙ୍କ କାନ୍ଧରେ ବଡ଼ ଗଣ୍ଠିଲିଟିଏ ଅଛି । ପାଦ ତାତିଯାଉଛି । ଇଚ୍ଛା କଲେ ବି ଶୀଘ୍ର ଚାଲି ହେଉନି ।

ପଧାନ ଅଜା ଝିଅ ଘରକୁ ବାହାରିଛନ୍ତି । ଆଜି ତାଙ୍କ ନାତିର ବାହାଘର । ଆଈବୁଢ଼ୀ ଝିଅ ଘରକୁ ଦୁଇଦିନ ହେଲା ଚାଲିଗଲାଣି । କିନ୍ତୁ ପଧାନ ଅଜା ଆଜି ଯାଉଛନ୍ତି । ଗାଁରେ କେତେ କାମ । ତାହା କରିବାକୁ ପଡ଼ିବ ।

ଦୂରରୁ ବସ୍‌ର ଶବ୍ଦ ଶୁଣାଗଲା । ପିଲାମାନେ ରାସ୍ତା ପାଖରୁ ଡାକିଲେ, "ଅଜା ବେଗେ ଆସ, ଗାଡ଼ି ଆସିଗଲା ।" ପଧାନ ଅଜା ଦୌଡ଼ିବାକୁ ଆରମ୍ଭ କଲେ । କିନ୍ତୁ ପହଞ୍ଚିବା ଆଗରୁ ଗାଡ଼ି ଛାଡ଼ିଦେଲା । ଅଜା ଆଉ କରନ୍ତେ କଣ ? ହତାଶ ହେଲେ । ତାଙ୍କ ମୁଣ୍ଡ ଉପରେ ଯେପରି କିଏ ଆଉ ଏକ ବଡ଼ ବୋଝ ଲଦି ଦେଲା । ଆଉ ଝିଅର ଗାଁକୁ ଯିବାକୁ ବସ୍ ନାହିଁ । କେମିତି ଯିବେ ? ତେଣେ ସଞ୍ଜ ପୂର୍ବରୁ ନ ପହଞ୍ଚିଲେ ବାହାଘର ବେଳ ଗଡ଼ିଯିବ । ଝିଅ ଓ ନାତି ମନ

ଦୁଃଖ କରବେ । ଅଣ୍ଡବୁଢ଼ୀ ନଶ୍ଚେ ଗାଳି ଦେବ । ନାତ ବାହାଘର ଦେଖି ହେବନାହିଁ ।



[ ଅଜା ବସ୍‌ରେ ଯାଇ ପାରିଲେ ନାହିଁ । ]

ପିଲ୍‌ମାନେ କହିଲେ, "ଅଜା, ଚାଲ ଚାଲ ଯାଅ । ଝାନପଦରକୁ ତିନ କୋଶ ରାସ୍ତା । କେତେ ସମୟ ଲାଗିବ ? ଏଇ ଘଡ଼ିଏ ଦୁଇ ଘଡ଼ି ଭିତରେ ପହଞ୍ଚିଯିବ ।"

ପଧାନ ଅଜା ପିଲ୍‌ମାନଙ୍କ ମୁହଁକୁ ଚାହିଁଲେ । ମନେ ମନେ ଭାବିଲେ, "ଜୁଆନ୍ ବୟସରେ ଦିନକରେ ଦଶ ପନ୍ଦର କୋଶ ଚାଲି ଯାଉଥିଲି । ସେତେବେଳେ ରାସ୍ତା ନଥିଲା କି ଗାଡ଼ି ନଥିଲା । ଚାରିଆଡ଼େ ଖାଲି କଣ୍ଟା ଆଉ ଜଙ୍ଗଲ । ଏ ବସ୍ ଚାଲିଲା ଦିନଠାରୁ ସଭିଏଁ ଅଲସୁଆ ହୋଇ ଗଲେଣି ।"

ଅଜା ଉପରକୁ ଚାହିଁଲେ । ବଡ଼ ଠାକୁରଙ୍କୁ ହାତ ଯୋଡ଼ି ନମସ୍କାର କଲେ । ଗଣ୍ଠିଲିଟାକୁ କାନ୍ଧରେ ଲଦି ଆଗକୁ ପାଦ ପକାଇଲେ ।

ବୈଶାଖ ମାସ । ଦିନ ଦ୍ୱିପହର ଖରା ଦେହକୁ ବାଧୁଛି । ଝାଞ୍ଜି ପବନରେ ମୁହଁଟା ପୋଡ଼ିଗଲା ପରି ଲାଗୁଛି । କଣ ବା ଆଉ କରିବେ । ଝାଞ୍ଜି ପବନ ଓ ଖରାକୁ ସହି ଚାଲିଚାଲି ଯିବାକୁ ପଡ଼ିବ । ସେହି ମନବଳ ନେଇ ଆଗକୁ ଚାଲିଲେ । ଚାଲିଚାଲି ବହୁତ ବାଟ ଆସିଲେ । ଏହି ସମୟରେ ଦୂରରୁ ବାଜା ଶବ୍ଦ ଶୁଣାଗଲା । ଝିଅର ଶାଶୁ ଘର ପାଖ ହୋଇଗଲାଣି । ମନେ ମନେ ଖୁସି ହୋଇ ଚାଲିଲେ । କିନ୍ତୁ ଝାଞ୍ଜି ପବନ ଜୋର୍‌ରେ ବହିବାରୁ ଅଜାଙ୍କ ଦେହରୁ ଗମ୍ ଗମ୍ ଝାଳ ବାହାରୁଥାଏ । ଭାରି ଶୋଷ ଲାଗିଲା । ଚାରିଆଡ଼କୁ ଚାହିଁଲେ । କିନ୍ତୁ ଏ ଦ୍ୱିପହରିଆ ଖରାରେ ପାଣି ମିଳିବ କେଉଁଠୁ ?

ଅଜାଙ୍କୁ ବୁଦ୍ଧି କିଛି ଦେଖାଗଲା ନାହିଁ । ସେ ଆସ୍ତେ ଆସ୍ତେ ଯାଇ ଗୋଟିଏ ବରଗଛ ମୂଳେ ବସି ପଡ଼ିଲେ । ହେଲେ କରିବେ କଣ ? ତଣ୍ଟି ଶୁଖି ଯାଉଛି । ଜିଭ ଅଠା ଅଠା ଲାଗୁଛି । ପାଖ ପାଖରେ ପାଣି ନାହିଁ । ସାହାଯ୍ୟ କରିବାକୁ ଲୋକଟିଏ ବି ନାହିଁ ।

ଏହି ସମୟରେ ପଛଆଡ଼ୁ ଶୁଣାଗଲା, "ପଧାନ ଅଜା, କୁଆଡ଼େ…"

ପଧାନ ଅଜା ପଛକୁ ଚାହିଁଲେ । ପାଣି କଳସୀ ଦୁଇଟି ଧରି ସେ ଗାଁର ଝିଅ ସୀତା ଠିଆ ହୋଇଛି । ଅଜାଙ୍କ ଦେହରେ ଜୀବନ ପଶିଲା । କହିଲେ, "ଝିଅ, ପାଣି ମୁନ୍ଦେ ଦେଲୁ । ମୋ ତଣ୍ଟି ଶୁଖି ଗଲାଣି ।" ସୀତା ତା' କଳସୀରୁ

ପାଣି ଢାଳି ଦେଲା । ଅଜା ମନଭରି ପାଣି ପିଇଲେ । ତାପରେ ଆଶ୍ୱସ୍ତ ହେଲେ ।



[ ଅଜା ପାଣି ପିଉଚନ୍ତି । ]

ଅଜା କହିଲେ, ମା, ବୁଢ଼ୀଟିଏ ହୋଇଥା । ମୁଁ ଆଶୀର୍ବାଦ କରୁଛି - ଶହେ ବର୍ଷ ବଞ୍ଚିବୁ । ତୁ ନ ଆସିଥିଲେ ପାଣି ବିନା ମୋ ଜୀବନ ଚାଲି ଯାଇଥାନ୍ତା । ମତେ ବଞ୍ଚେଇ ଦେଲୁ ।"

ସୀତା ପଚାରିଲା, "ଅଜା, ନାତି ବାହାଘରକୁ ଯାଉଛ କି ?" ଅଜା କହିଲେ—ହଁ । ସୀତା ମଧ୍ୟ ଯିବାକୁ ବାହାରିଲା । ଅଜା ସୀତା ସହ ପୁଣି ଚାଲିବାକୁ ଆରମ୍ଭ କଲେ । ଅଜା ପଚାରିଲେ—ଝିଅ, ତୁମ ଗାଁରେ ତ କୂଅ ଅଛି; ତୁ ସେ ଝରଣାରୁ କାହିଁକି ପାଣି ନେଉଛୁ ?

ସୀତା କହିଲା—ଅଜା, ଦୁଇ ବର୍ଷ ହେଲା ଭଲ ବର୍ଷା ହୋଇନ । କୂଅ ତ ଶୁଖି ଗଲାଣି । ଯାହା ଅଳ୍ପ ପାଣି ଅଛି—ଗୋଳିଆ ଏବଂ ଅପରିଷ୍କାର । ଏ ପରା ଖରାଦିନ । ନଦୀ ନାଳରେ ବ ଟୋପେ ପାଣି ନାହିଁ । ଏଣୁ ଝରଣା ଦୂର ହେଲେ ମଧ୍ୟ ପାଣି ନେବାକୁ ପଡ଼ୁଛି ।

ଅଜା ପଚାରିଲେ—ତୁମ ଗାଁରେ ନଳ କୂଅ ଅଛି । ପୋଖରୀ ମଧ୍ୟ ଅଛି । ସେଥିରେ କଣ ପାଣି ନାହିଁ ?

ସୀତା କହିଲା—ଅଜା, ନଳ କୂଅ କଥା ନ କହିଲେ ଭଲ । ଗାଁରେ ଏତେ ଲୋକ, ଗୋଟିଏ ବୋଲି ନଳ କୂଅ । ବର୍ଷା ତ ନାହିଁ । ସେଥିରେ କେଉଁଠୁ ପାଣି ଆସିବ ? ଅଳ୍ପ ଅଳ୍ପ ପାଣି ବାହାରୁଛି । ନଳ କୂଅ ପାଖରେ ପାଣି ପାଇଁ କେତେ ଠିଆ ହେବୁ । ପୁଣି ଘର କାମ ତ ଅଛି !

ଅଜା କହିଲେ–ଇନ୍ଦ୍ର ଦେବତା ବର୍ଷା କଲେ ସିନା ପାଣି ଟୋପେ ମିଳିବ । ବର୍ଷା ନହେଲେ ପାଣି ମିଳିବ କେଉଁଠୁ ? ଆଗେ କିନ୍ତୁ ଏଭଳି ନଥିଲା । ଠିକ୍ ସମୟରେ ପ୍ରଚୁର ବର୍ଷା ହେଉଥିଲା । ବର୍ଷା ପାଣିରେ ନଈ, ପୋଖରୀ, କୂଅ ସବୁ ଉଚ୍ଛୁଳୁଥିଲା । ବର୍ଷ ସାରା ପାଣିର ଅଭାବ ନ ଥିଲା ।

ସୀତା କହିଲା—ଜେଜେ, ଏବେ ଯୁଗ ବଦଳି ଯାଇଛି । ବଣ, ଜଙ୍ଗଲ, ଗଛ ସବୁ ସଫା ହୋଇଗଲାଣି । ବର୍ଷା ହେବ କେମିତି ? ବର୍ଷା ତ ହେଉନ, ତେଣୁ ପାଣି ପାଇଁ କଷ୍ଟ ସହିବାକୁ ପଡ଼ିବ ।



[ ପୋଖରୀରେ ପାଣି ଭର୍ତ୍ତି ହୋଇଛି ।

ସୀତା ସହ କଥାବାର୍ତ୍ତା କରୁ କରୁ ପଧାନ ଅଜା ସାନପଦର ଗାଁରେ ପହଞ୍ଚି ଗଲେ । ସୀତା କହିଲା - ଅଜା, ଏଇ ତୁମ ଝିଅ ଘର ହେଲାଣି । ନାତ ବାହାଘର ଭୋଜି ଖାଇସାରି ଆମ ଘରକୁ ଆସିବ ।

ଅଜା କହିଲେ—ମା ଲୋ, ତୋ ଘରକୁ ନିଶ୍ଚେ ଆସିବ । ତୋ ଉପକାର କଣ ମୁଁ ଏ ଜନମରେ ଭୁଲି ପାରିବ—କହି ଅଜା ଧୀରେ ଧୀରେ ଝିଅ ଘରକୁ ଚାଲିଲେ ।

---

## ଅଜାଙ୍କ ପ୍ରଶ୍ନ

ପଧାନ ଅଜା ଗାନ୍ଧୀ, ନେହେରୁ ଯୁଗର ଲୋକ । ଭାରି ପରୋପକାରୀ । ତାଙ୍କ ପାଖରେ ପର ଆପଣା କିଛି

ଭେଦଭାବ ନାହିଁ । ଘର କଳିଠାରୁ, ଗାଁ କଳି ପର୍ଯ୍ୟନ୍ତ ସେ ଅନେକ ନ୍ୟାୟ ନିଶାପ କରିଛନ୍ତି । ବିପଦ ଆପଦରେ ଧର୍ମସ୍ତଙ୍କ ପାଖରେ ଠିଆ ହୁଅନ୍ତି । ଏଣୁ ଲୋକମାନେ ପଧାନ ଅଜାଙ୍କୁ ବହୁତ ଭଲ ପାଆନ୍ତି ।



[ ଅଜା ଗାଁ ଲୋକଙ୍କ ସହିତ କଥାବାର୍ତ୍ତା ହେଉଚନ୍ତି ]

ସାନପଦର ଗାଁରେ ଅଜା ପହଞ୍ଚିଲା ପରେ ଗାଁ ଲୋକ ତାଙ୍କୁ ଘେରିଗଲେ । ଭଲ ମନ୍ଦ ପଚାରିଲେ । ବାହାଘର ବେଳ ହୋଇ ଯାଇଥିଲା । ସମସ୍ତେ ଭୋଜି ଭାତ ଖାଇଲେ ।

ତହିଁ ଆର ଦିନ ଗାଁର ଯୁବକମାନେ ଅଜାଙ୍କ ଚାରିପଟେ ବସିଗଲେ । କହିଲେ, "ଅଜା, ତୁମେ କେମିତି ଆସିଲ । ଆଉ ତମ ଖବର କ'ଣ କିଛି କୁହ ।

ଅଜା କହିଲେ—ଗତ କାଲି ମୁଁ ତୁମ ଗାଁକୁ ଚାଲି ଚାଲି ଆସିଛି । ଦ୍ୱିପହର ଖରାରେ ମୋ ତଣ୍ଟି ବି ଶୁଖି ଯାଇଥିଲା । ତୁମେମାନେ ପାଠ ତ ପଢ଼ିଛ । ତୁମେମାନେ ଆଗେ ମୋ ପ୍ରଶ୍ନର ଉତ୍ତର ଦିଅ । ପାଣି ଆମ ଦେହର କି କାମରେ ଲାଗେ ? ପାଣି ନ ପିଇଲେ ଆମେ ଥକି ଯାଉ କାହିଁକି ?

ଯୁବକମାନେ ପରସ୍ପର ମୁହଁକୁ ଚାହିଁଲେ । ଜଣେ କହିଲା— ଆରେ ସପନା, ତୁ ପରା କଷ୍ଟକରେ ପାଠ ପଢ଼ୁଛୁ । ତୁ ଅଜାଙ୍କ ପ୍ରଶ୍ନର ଉତ୍ତର ଦେଉନୁ ।

ସପନା କହିଲା—ପାଣି ଆମର ଜୀବନ ଭଳି । ପାଣି ବିନା ଆମେ ବଞ୍ଚି ପାରିବା ନାହିଁ । ସାଧାରଣତଃ ଆମେ ଖାଇବା ସମୟରେ ପାଣି ପିଉଛେ । ଏ ପାଣି ଖାଦ୍ୟ ହଜମରେ ସାହାଯ୍ୟ କରେ । ଖାଦ୍ୟର ସାର ଅଂଶକୁ ରକ୍ତରେ ମିଶାଏ । ରକ୍ତକୁ ତରଳ କରି ଦେହର ଚାରିଆଡ଼େ ଖେଳାଇ ଦେବାରେ ସାହାଯ୍ୟ କରେ ।

ଅଜା ପଚାରିଲେ—ସପନା, ଆମ ଦେହରେ ପାଣି କି ରୂପରେ ରହିଛି ।

ସପନା କହିଲା—ଆମ ଦେହର ପ୍ରାୟ ସବୁ ଅଂଶରେ ଜଳ ରହିଛି । ଆମ ଦେହ ଓଜନର ଶହେ ଭାଗରୁ ପ୍ରାୟ ଷାଠିଏ ଭାଗ ଜଳ ରହିଛି । ଆମ ପାଟିରୁ ଲାଳ ବାହାରେ ।

ଏଥିରେ ଶତକଡ଼ା ନବେଭାଗ ଜଳ ରହିଛି । ରକ୍ତରେ ମଧ୍ୟ ଜଳ ରହିଛି ।

ଅଜା ପଚାରିଲେ—ରକ୍ତରେ ଥିବା ଜଳ କ'ଣ କାମରେ ଲାଗିଥାଏ ? ସପନା କହିଲା—ଏହି ଜଳ ରକ୍ତ ସହ ଚାରିଆଡ଼େ ଖେଳାଇ ହୋଇ ଦେହର ମଇଳାକୁ ମୂତ୍ର ଓ ଝାଳ ରୂପରେ ବାହାର କରିଦିଏ ।

ଅଜା କହିଲେ—ଜଳ ଆମ ଦେହ ପାଇଁ କ'ଣ ସବୁବେଳେ ଦରକାର ?

ସପନା କହିଲା—ହଁ, ଆମ ଦେହ ପାଇଁ ଜଳ ସବୁବେଳେ ଦରକାର । ଆମେ ଆମ ଦେହ ଭିତର କଥା ସବୁ ଜାଣି ପାରୁନାହୁଁ । ଆମ ଦେହ ଭିତରେ ଅନେକ କ୍ରିୟାକର୍ମ ଆପେ ଆପେ ଚାଲିଛି । ପାଣି ଅଭାବ ହେଲେ ଏହି କ୍ରିୟାଗୁଡ଼ିକ ଚାଲିପାରେ ନାହିଁ । ତେଣୁ ଆମକୁ ଦିନକୁ ୩ ରୁ ୪ ଲିଟର ପାଣି ପିଇବାକୁ ପଡ଼ିଥାଏ ।

ଅଜା କହିଲେ—ଓଃ ! ସେଇଥି ପାଇଁ ମୋ ତଣ୍ଟି ଶୁଖି-ଯାଉଥିଲା । ଅଜାଙ୍କ କଥା ଶୁଣି ପିଲାମାନେ ହସିବାକୁ ଲାଗିଲେ । ସଞ୍ଜ ହୋଇ ଆସୁଥିଲା । ଅଜା କହିଲେ—ଏଥର ସବୁ ଉଠ, ନିତ୍ୟକର୍ମ ସାରିବା ।

———

## ଅଜା ଡାକ୍ତରଙ୍କୁ ଭେଟିଲେ

ପଧାନ ଅଜା ନିତ୍ୟକର୍ମ ସାରି ମନ୍ଦିରକୁ ଗଲେ । ଠାକୁରଙ୍କ ପାଖରେ ଭୋଗ ଥାଳଟି ରଖିଦେଲେ । ମନ୍ଦିର ପାହାଚରେ ବସି ଠାକୁରଙ୍କ ଜଣାଣ ଗାଇଲେ । ମୁଣ୍ଡ ନୁଆଇଁ ଠାକୁରଙ୍କୁ ପ୍ରଣାମ କଲେ । ଜଳ ତୁଳସୀ ଟୋପାଏ ସେବନ କଲେ ।

ମନ୍ଦିର କାମ ସାରି ଅଜା ଗାଁ ଆଡ଼କୁ ପାଦ ବଢ଼ାଇଲେ । ସାନପଦର ଆସିଲେ ସେ ଠାକୁର ମନ୍ଦିରକୁ ସକାଳୁ ଆସନ୍ତି ।



[ ମଣିଆ ସହିତ ଅଜା କଥା ହେଉଛନ୍ତି । ]

"ନମସ୍କାର ଅଜା !"

ଅଜା ପଛକୁ ଫେରି ଚାହିଁଲେ । ପଛରେ ମଣିଆ ଠିଆ ହୋଇଥିଲା । ଅଜା ପଚାରିଲେ—ମଣିଆ, କଣ ମନ୍ଦିର ଆସିଥିଲୁ କି ? ଛୁଆ ପିଲା ସବୁ ଭଲରେ ଅଛନ୍ତି ତ ?

ମଣିଆ ଆଖିରୁ ଲୁହ ପୋଛି କାନ୍ଦ କାନ୍ଦ ହୋଇ କହିଲା—ଅଜା, ମୋର ସବୁ ସରିଗଲା । ଗୋଟିଏ ବୋଲି ପୁଅ । କାଲିଠାରୁ ପତଳା ଝାଡ଼ା ହେଉଛି । ବଇଦ ଗୁଣିଆ ଅନେକ ଝଡ଼ା ଫୁଙ୍କା କଲେଣି । ଗାଁ ଠାକୁରାଣୀଙ୍କ ପାଖରେ ମାନସିକ କରିସାରିଲିଣି । କିନ୍ତୁ ପୁଅର ଝାଡ଼ା ଭଲ ହେଉନି । ଭାରି ଦୁର୍ବଳ ହୋଇଗଲାଣି । କଣ କରିବି ? କିଛି ବୁଦ୍ଧି ଦିଶୁନି ।

ଅଜା ଟିକେ ସମୟ ଭାବିଲେ । ତାପରେ କହିଲେ—ମଣିଆ, ଟିକେ ଧୈର୍ଯ୍ୟ ଧର । ସବୁ କଥାରେ ଏମିତି ବ୍ୟସ୍ତ ହେଲେ କଣ ଚଳିବ ? ତୁ ଡାକ୍ତରଙ୍କ ପାଖକୁ ଯାଇଥିଲୁ ? ମଣିଆ କହିଲା—ନା, ଆମର ଏଇସବୁ ଦେଶୀ ଉପଚାର ଓ ଚେରମୂଳି ଔଷଧ ତ ଦେଇଛି ।

ଅଜା କହିଲେ—ତୁ ବଡ଼ ବୋକା ଅଛୁ । ଆମମାନଙ୍କ ପାଇଁ ସରକାର ଡାକ୍ତରଖାନା ଖୋଲିଛନ୍ତି । ସାଙ୍ଗରେ ତୋ ପୁଅକୁ ନେଇ ଚାଲ । କାଲି ଡାକ୍ତରଖାନାକୁ ଯିବା । ଡାକ୍ତରଙ୍କୁ ଦେଖାଇଲେ ତୋ ପୁଅ ନିଶ୍ଚେ ଭଲ ହୋଇଯିବ ।

ମଣିଆ ମନରେ ସାହସ ଆସିଲା । ସେ ଅଜାଙ୍କ କଥାରେ ରାଜି ହୋଇଗଲା । ପରଦିନ ଅଜା ଓ ମଣିଆ ଛୋଟ ପୁଅଟିକୁ ନେଇ ଡାକ୍ତରଖାନାକୁ ଗଲେ । ଡାକ୍ତର ପଧାନ ଅଜାଙ୍କୁ ଦେଖି ଖୁସି ହେଲେ । ମଣିଆର ପୁଅକୁ ଦେଖିଲେ । ଇଞ୍ଜେକ୍‌ସନ୍ ଓ ଔଷଧ ଦେଲେ ।

ଡାକ୍ତର ମଣିଆକୁ ପଚାରିଲେ—ମଣିଆ, ତୁମେ ପାଣି କେଉଁଠୁ ନେଇ ପିଉଛ ? ମଣିଆ କହିଲା—ଆଜ୍ଞା, ଗାଁ ପୋଖରୀରୁ ପାଣି ନେଇ ପିଉଛୁ । ଡାକ୍ତର କହିଲେ—ସେଥିପାଇଁ ତୁମ ପୁଅର ଦେହ ଖରାପ ହେଲା । ଆହୁରି କହିଲେ—ଲୋକମାନଂକୁ ଯେତେ କହିଲେ ବି ବୁଝୁ ନାହାନ୍ତି ।



ସମସ୍ତଂକୁ କହୁଚି ପୋଖରୀର ପାଣି ସବୁ ରୋଗର ମୂଳ କାରଣ । ତଥାପି ଲୋକମାନେ ପୋଖରୀରୁ ପାଣି ନେଇ ପିଉଛନ୍ତି । ମଣିଆ, ତୁମ ଗାଁରେ କୂଅ ଓ ନଳକୂଅ ଅଛି । ତୁମେ ସେଠୁ ନେଇ ପାଣି ବ୍ୟବହାର କରୁନ ?

ମଣିଆ କହିଲା—ଡାକ୍ତରବାବୁ, ଏ ପୋଖରୀ କେଉଁ କାଳରୁ ଅଛି । ସେଠାରୁ ଆମେ ବହୁତ ଦିନରୁ ପାଣି ପିଉଛୁ । ବର୍ତ୍ତମାନ ସେ ପାଣି ରୋଗର ମୂଳ ହେଲା କେମିତି ?

ଡାକ୍ତରବାବୁ କହିଲେ—ଆଗରୁ ଗାଁରେ ଅଳପ ଲୋକ ଥିଲେ । ପୋଖରୀର ପାଣିକୁ ପରିଷ୍କାର ରଖିବା ପାଇଁ ଯତ୍ନ ନେଉଥିଲେ । କିନ୍ତୁ ବର୍ତ୍ତମାନ ଲୋକସଂଖ୍ୟା ବଢ଼ିଗଲାଣି । ଲୋକମାନେ ପୋଖରୀ ପାଣିକୁ ଅପରିଷ୍କାର କରି ଦେଉଛନ୍ତି । ପାଣିକୁ କେମିତି ସଫା ରଖିବା ସେକଥା ମୋଟେ ଚିନ୍ତା କରୁ ନାହାନ୍ତି ।

ଅକା ଡାକ୍ତରଙ୍କ କଥା ଶୁଣି ପଚାରିଲେ, "ଆଜ୍ଞା, ପୋଖରୀ ପାଣି ଅପରିଷ୍କାର କିପରି ହେଉଛି ?"

ଡାକ୍ତର କହିଲେ - ପୋଖରୀରେ ତୁମେମାନେ ପ୍ରତିଦିନ ଗାଧୋଉଛ । ସ୍ତ୍ରୀ ଲୋକମାନେ ପିଲାଛୁଆଙ୍କର ମଇଳାକନା ଧୋଉଛନ୍ତି । ଅଇଁଠା ବାସନକୁସନ ମାଜି ସଫା କରୁଛନ୍ତି । କେତେକ ଲୋକ ଗୋରୁ ଗାଈଙ୍କୁ ମଧ୍ୟ ପୋଖରୀରେ ଗାଧୋଇ ଦେଉଛନ୍ତି । ଗାଁ ଧୋବା ସେଠାରେ ତୁଠ କରୁଛି । ବେଳେବେଳେ ଲୋକମାନେ ଛଣି, ଝୋଟ, ବାଉଁଶ କଷଉଛନ୍ତି । ଏ ସବୁ କରିବା ଫଳରେ ପୋଖରୀରେ ମଇଳା ରହିଯାଉଛି । ତେଣୁ ଜଳ ଅପରିଷ୍କାର ହେଉଛି । ରୋଗ ଜୀବାଣୁ ସୁବିଧାରେ ବଢ଼ୁଛନ୍ତି ।

ଅକା କହିଲେ, "ଆପଣ ଯାହା କହିଲେ ଠିକ୍ କଥା । ଲୋକମାନେ ପୋଖରୀ ଜଳକୁ ଦୂଷିତ କରୁଛନ୍ତି । ତେଣୁ

ସେଥିରେ ଜୀବାଣୁ ମଧ୍ୟ ବଢ଼ି ଯାଉଛନ୍ତି । କିନ୍ତୁ ରୋଗ କରୁଥିବା ଜୀବାଣୁ ପାଣିରେ ପଶିଲେ କିପରି ?"



[ ପୋଖରୀ ପାଣି ଦୂଷିତ ହେଉଛି ]

ଡାକ୍ତରବାବୁ ପୁଣି କହିଲେ, "ରୋଗ ଜୀବାଣୁ ଖାଲି ଆଖିକୁ ଦେଖା ଯାଆନ୍ତି ନାହିଁ । ଏସବୁ ରୋଗୀର ଲୁଗା-ପଟାରେ ଲାଗି ଥାଆନ୍ତି । ତୁମ ଗାଁର ଅନେକେ ପୋଖରୀ ହୁଡ଼ାରେ ଝାଡ଼ା ଯାଉଅଛ । ସେହି ଝାଡ଼ାରେ ରୋଗ ଜୀବାଣୁ ଥାଆନ୍ତି । ବର୍ଷା ହେଲେ ଧୋଇ ହୋଇ ପୋଖରୀ ଜଳରେ ମିଶନ୍ତି । ଫଳରେ ପୋଖରୀ ଜଳରେ ରୋଗ ଜୀବାଣୁ ବଢ଼େ ।"

ମଣିଆ ପଚାରିଲା, "ତା'ହେଲେ ଆମେ ପାଣି କେଉଁଠୁ ପିଇବୁ ?" ଡାକ୍ତରବାବୁ କହିଲେ, "ତୁମ ଗାଁରେ ତ କୂଅ ଅଛି । କୂଅର ପାଣି ପୋଖରୀ ପାଣି ଠାରୁ ପରିଷ୍କାର । ତୁମେମାନେ କୂଅରୁ ପାଣି ନେଇ ବ୍ୟବହାର କର ।"

ଅଜା କହିଲେ, "ଗାଁରେ ଗୋଟିଏ ବୋଲି କୂଅ । ଏ ବର୍ଷ ଟାଣ ଖରାରେ ପାଣି ଶୁଖି ଯାଇଛି । ଯାହା ଅଳ୍ପ ପାଣି ଅଛି ତାହା ବି ଅପରିଷ୍କାର ହୋଇ ଯାଇଛି । ଚାଲନ୍ତୁ, ଆପଣ ନିଜେ ଦେଖି ଆସିବେ ।"

ଡାକ୍ତରବାବୁ କହିଲେ, "ଆପଣମାନେ ଚାଲନ୍ତୁ । ମୁଁ ରୋଗୀ ଦେଖିସାରି ଯାଉଛି ।"

ଅଜା ଓ ମଣିଆ ଟିକି ପୁଅଟିକୁ ସାଙ୍ଗରେ ନେଇ ଗାଁକୁ ଫେରି ଆସିଲେ ।

## ଡାକ୍ତରବାବୁ କୂଅ ଦେଖିଲେ

ଉପରବେଳା ପ୍ରାୟ ପାଞ୍ଚଟା ବେଳକୁ ଡାକ୍ତରବାବୁ ସାନପଦର ଗାଁରେ ପହଞ୍ଚିଲେ । ଅଜା ଓ ଗାଁର ମୁଖିଆ ଲୋକମାନେ ଡାକ୍ତରବାବୁଙ୍କୁ ଅପେକ୍ଷା କରିଥିଲେ । ସମସ୍ତେ ମିଶି ଗାଁ କୂଅ ପାଖକୁ ଗଲେ ।

କୂଅ ପାଖରେ ପହଞ୍ଚିଲା ପରେ ଅଜା କହିଲେ— ଡାକ୍ତରବାବୁ, ଏ କୂଅ ଅନେକ ବର୍ଷ ତଳର । ରାମ ମହାନ୍ତିର ବାପା ଏହାକୁ ଖୋଳାଇ ଥିଲେ । ଏ ଯେଉଁ ବରଗଛ ଓ ଓସ୍ତଗଛ ଦେଖୁଛନ୍ତି, ତାକୁ ରାମ ଲଗାଇଛି ।

ଡାକ୍ତରବାବୁ କୂଅ ପାଖକୁ ଗଲେ । କୂଅ ଗୃଣ୍ଡ ପାଖ ଦେଖିଲେ । ତାପରେ ପଚାରିଲେ, "ଏ କୂଅର କାନ୍ଥ ଓ ସିମେଣ୍ଟ ଚଉତର ଭାଙ୍ଗିଲା କପର ?"

ମଣିଆ କହିଲା—କୂଅ ଅନେକ ପୁରୁଣା ହେଲାଣି । ତେଣୁ ପଥର ଖସି ପଡ଼ିଲା ପରେ କାନ୍ଥ ଭାଙ୍ଗି ଯାଇଛି ।



[ ଗାଁ ଲୋକେ କୂଅ ପାଖରେ ସଫା କରୁଛନ୍ତି । ]

କୂଅ ମଲେ ଲୋକମାନେ ଗାଧୂଆ ପାଧୁଆ କରନ୍ତି । ବାସନ କୁସନ, ଲୁଗା ଇତ୍ୟାଦି ସଫା କରନ୍ତି ।'

ଡାକ୍ତର ପଚାରିଲେ—ତା'ହେଲେ ଏ ମଇଲା ପାଣି କୂଅ ଭିତରେ ପଶୁଥିବ ?

ମଣିଆ କହିଲା—କୂଅର ଗୋଟାଏ ପାଖ କାନ୍ଥ ତ ଭଙ୍ଗା । ତେଣୁ ସେ ଭଙ୍ଗା ବାଟ ଦେଇ ସବୁ ମଇଲା ପାଣି

କୂଅ ଭିତରେ ପଶୁଛି । କୂଅର ଉଚ୍ଚତା ଭୂମି ପତନଠାରୁ ଅଳ୍ପ । ତେଣୁ ଜୋରରେ ବର୍ଷା ହେଲେ ବାହାରର ଗୋଳିଆ ପାଣି ବ ପଶୁଛି ।

ଡାକ୍ତରବାବୁ କହିଲେ—ବାହାରର ସବୁ ଖରାପ ପାଣି ଏ କୂଅ ପାଣି ସହିତ ମିଶି ଦୂଷିତ ହୋଇ ଗଲାଣି । ସେ ପାଖରେ ଯେଉଁ ଘରଟି ଅଛି ସେଇଟି କାହାର ?

ମଣିଆ କହିଲା, "ସେଇ ଘରଟି ରାମ ମହନ୍ତର ଗୁହାଳ ଘର । ଏ କୂଅଟି ତା ବାପା ଖୋଳାଇ ଥିଲେ । କୂଅ ପାଖରେ ସେ ଗୋରୁଙ୍କୁ କୁଣ୍ଡା ତୋରାଣି ପିଆଏ । ବେଳେ ବେଳେ ଗାଈଗୋରୁଙ୍କୁ ଗାଧୋଇ ବ ଦିଏ ।"

ଡାକ୍ତର କହିଲେ, "ଏ କୂଅ ପାଣି ଦୂଷିତ ହୋଇ-ଯାଇଛି । ଆପଣମାନେ କୂଅର ପାଣି ବ୍ୟବହାର କରୁଛନ୍ତି । କିନ୍ତୁ ତାର ଉପଯୁକ୍ତ ଯତ୍ନ ନେଉନାହାନ୍ତି । କୂଅ ମୂଳରେ ବାସନ ମାଜିବା, ଗାଧୋଇବା, ଲୁଗା ସଫା କରିବା ଉଚିତ ନୁହେଁ ।

ଡାକ୍ତର ବରଗଛ, ଓସ୍ତଗଛକୁ ଦେଖାଇ କହିଲେ, "ଏହି ଗଛର ପତ୍ର ଓ ଫଳ କୂଅ ଭିତରେ ପଡ଼ୁଛି । ପାଣିରେ ସେ ସବୁ ପଚିଯାଉଛି । ତେଣୁ ପାଣି ଦୂଷିତ ହେଉଛି । କୂଅ ପାଖରେ ଖତଗଦା କରିବା, ଗୁହାଳ କରିବା ଉଚିତ ନୁହେଁ । ଏଥିରୁ କେତେକ ଆବର୍ଜନା ପାଣି ସହିତ ଭିଜି ଯାଇ କୂଅରେ ପଡ଼େ । ପାଣି ଅପରିଷ୍କାର ହୁଏ ।"

ଗାଁର ମୁଖିଆମାନେ ଓ ଅକା ଡାକ୍ତରଙ୍କର କଥା ସବୁ

ଶୁଣୁଥାନ୍ତି । କିଛି ସମୟ ପରେ ଅଜା ପଚାରିଲେ "ତା'ହେଲେ ଆମେ ସବୁ କଣ କରିବୁ ?"

ଡାକ୍ତର କହିଲେ, "ଆପଣମାନେ ଏ କୂଅର ପାଣି ପିଅନ୍ତୁ ନାହିଁ । ଏଥିରେ ରୋଷେଇ ମଧ୍ୟ କରନ୍ତୁ ନାହିଁ । ଏ ଅପରିଷ୍କାର ପାଣି ଯୋଗୁଁ ତୁମ ଗାଁରେ ଅନେକ ରୋଗ ବ୍ୟାପୁଛି ।"

ଗାଁର ଜଣେ ମୁଖିଆ ପଚାରିଲେ, ଆମେମାନେ ସିନା ପାଣି ପିଉଛୁ । ହେଲେ ରୋଗ କେମିତି ଗାଁରେ ବ୍ୟାପୁଛି ।"

ଡାକ୍ତର ବାବୁ କହିଲେ, "ହଇଜା, ଆମାଶୟ, ନାଳଝାଡ଼ା, ଟାଇଫଏଡ଼ ଇତ୍ୟାଦି ଗୋଟିଏ ଗୋଟିଏ ସଂକ୍ରାମକ ରୋଗ । ଏ ସବୁ କେତେକ ଜୀବାଣୁମାନଙ୍କ ଦ୍ୱାରା ହୋଇଥାଏ । ଏହି ଜୀବାଣୁ ଖାଲି ଆଖିକୁ ଦେଖାଯାନ୍ତି ନାହିଁ । ଏ ଗୁଡ଼ିକ ରୋଗୀଠାରୁ ଆସି ଦୂଷିତ ପାଣିରେ ରହନ୍ତି ଓ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଆନ୍ତି । ଏହି ପାଣି ପିଇଲେ ରୋଗ ଜଣକଠାରୁ ଅନ୍ୟ ଜଣକ ପାଖକୁ ଆସେ ।

ଅଜା ଓ ଗାଁ ମୁଖିଆମାନେ ପରସ୍ପର ମୁହଁକୁ ଚାହିଁଲେ । କଣ କରିବେ କିଛି ଠିକ୍ କରି ପାରିଲେନି । ଅଜା ପଚାରିଲେ, "ଡାକ୍ତର ବାବୁ ଏହି ରୋଗପାଇଁ କଣ କିଛି ପ୍ରତିକାର ନାହିଁ ?"

ଡାକ୍ତର କହିଲେ, "ଏହାର ପ୍ରତିକାର ଆପଣମାନେ ଚାହିଁଲେ କରିପାରିବେ । ବେଳହୁଁ ସାବଧାନ ନ ହେଲେ ଏ ରୋଗ ଜୀବନ ନେଇ ଯାଇପାରେ । ପ୍ରଥମେ ଆପଣମାନେ

ଗାଁ କୂଅ ଓ ପୋଖରୀକୁ ପରିଷ୍କାର କରନ୍ତୁ । ତାପରେ ସେ ଜଳକୁ ପିଅନ୍ତୁ ।”

ଅଜା କହିଲେ, “ଜଣେ ଲୋକ କଣ କୂଅ ଓ ପୋଖରୀ ସଫା କରିପାରିବ ?” ଡାକ୍ତରବାବୁ କହିଲେ, “ଆପଣ ଠିକ୍ କହୁଛନ୍ତି । ଏ ସବୁ କାମ ପାଇଁ ଗାଁ ଲୋକଙ୍କର ସହଯୋଗ ଲୋଡ଼ା । ଏଥିପାଇଁ ଆପଣମାନଙ୍କୁ ମିଳିମିଶି କାମ କରିବାକୁ ପଡ଼ିବ । ମୁଁ ମଧ୍ୟ ଆପଣମାନଙ୍କୁ ସହଯୋଗ କରିବ ।”

ଗାଁର ମୁଖିଆ ଲୋକମାନେ କହିଲେ—“ଗାଁରେ ଅନେକ ଲୋକ ଅଛନ୍ତି । ସମସ୍ତେ ଏ ସବୁ ବିଷୟରେ ଜାଣିବା ଦରକାର । ଆଜି ସନ୍ଧ୍ୟାରେ ଗାଁରେ ସଭା ବସିବ । ଆପଣ ଯଦି ଦୟାକରି ସଭାକୁ ଆସନ୍ତେ ଖୁବ୍ ଭଲ ହୁଅନ୍ତା ।”

ଡାକ୍ତର ବାବୁ ମୁଖିଆଙ୍କ କଥା ଶୁଣି ଖୁବ୍ ଖୁସି ହେଲେ । କହିଲେ, “ଆପଣମାନେ ସନ୍ଧ୍ୟାରେ ସଭା ଡାକନ୍ତୁ । ମୁଁ ସଭାରେ ସବୁ କଥା କହିବ ।”

ଡାକ୍ତର ବାବୁ ଚାଲିଗଲେ । ଗାଁର ମୁଖିଆମାନେ ସଭା ହେବାକୁ ଗାଁରେ ଧେଣ୍ଡୁରା ଦେଇଦେଲେ ।

## ଡାକ୍ତର ହଇଜା ବିଷୟରେ କହିଲେ

ମେଲଣ ପଡ଼ିଆରେ ସବୁଲୋକ ଜମା ହୋଇଗଲେ । ସମସ୍ତେ ଚୁପ୍‌ଚାପ ହେଉଛନ୍ତି, “ଡାକ୍ତର ବାବୁ କଣ କହିବେ ।”

ପଧାନ ଅଜା ଓ ଡାକ୍ତର ବାବୁ ସଭା ଡାକିଲେ । ଏମିତ ସଭା କେବେ ହୋଇ ନଥିଲା । ଡାକ୍ତର ବାବୁ ଓ ପଧାନ ଅଜା ଆସି ପହଞ୍ଚିଗଲେ । ସମସ୍ତେ ଚୁପ୍‌ଚାପ ହୋଇ ବସିଲେ ।



[ ଡାକ୍ତରବାବୁ ଗାଁ ଲୋକଙ୍କୁ ବୁଝାଉଛନ୍ତି ]

ପଧାନ ଅଜା କହିଲେ—"ଭାଇମାନେ, ଆଜି ଏକ ଶୁଭଦିନ । ଡାକ୍ତରବାବୁ ତୁମମାନଙ୍କୁ ଏ ସଭାପାଇଁ ଡାକିଛନ୍ତି । ଏ ଗାଁରେ ପିଇବା ପାଣି ଦୂଷିତ ହୋଇ ଯାଇଛି । ମଇଲା ପାଣି ଦ୍ୱାରା ହଇଜା, ଆମାଶୟ, ଟାଇଫଏଡ୍, ନାଳ ଝାଡ଼ା ଆଦି ରୋଗ ଗାଁରେ ବ୍ୟାପିବାକୁ ଆରମ୍ଭ କଲାଣି । ଡାକ୍ତରବାବୁ କାଲି ମଣିଆ ପୁଅକୁ ଔଷଧ ଦେଲେ । ସେ ହଇଜାରୁ

ଅଳ୍ପକେ ରକ୍ଷା ପାଇଗଲ୍ । ଏଣୁ ହଇଜା ରୋଗ ସାନପଦର ଗାଁରେ ହେଉ ଏକଥା ଆପଣମାନେ କଣ ଚାହାନ୍ତି ?

ସମସ୍ତେ ଏକ ସ୍ୱରରେ କହିଲେ—'ନା'।

ପଧାନ ଅଜା କହିଲେ—ଡାକ୍ତରବାବୁ ତୁମକୁ ହଇଜା ବିଷୟରେ କହିବେ । ତୁମେମାନେ ମନଦେଇ ଶୁଣ । ଡାକ୍ତରବାବୁ ସମସ୍ତଙ୍କୁ ପ୍ରଥମେ ନମସ୍କାର ଜଣାଇ ତାଙ୍କର କହିବା ଆରମ୍ଭ କଲେ ।

ଡାକ୍ତର—ହଇଜା ଗୋଟିଏ ମାରାତ୍ମକ ସଂକ୍ରାମକ ରୋଗ।

ଏହି ରୋଗ ଆରମ୍ଭ ହେବା ମାତ୍ରେ ଚିକିତ୍ସା କରିବା ଦରକାର ।

ବିଳମ୍ବ ଓ ଅବହେଳା କଲେ ରୋଗୀ ମରିଯାଇ ପାରେ।

ଅଜା—ହଇଜା ରୋଗର ଲକ୍ଷଣ କଣ ?

ଡାକ୍ତର—ପ୍ରଥମେ ରୋଗୀର ଅଜୀର୍ଣ୍ଣ ଝାଡ଼ା ହୁଏ। ଏହା ସଙ୍ଗେ ସଙ୍ଗେ ବାନ୍ତି ମଧ୍ୟ ହୁଏ। ଅଳ୍ପ ସମୟ ପରେ ରୋଗୀ ଦୁର୍ବଳ ହୋଇଯାଏ। ଗୋଡ଼ ହାତରୁ ବାଉଁଲ୍ ଉଠେ; ଶୋଷ ହୁଏ; ଜିଭ ଓ ତଣ୍ଟି ଶୁଖିଯାଏ । ଆଖି ଭିତରକୁ ପଶିଯାଏ; ଚମ ଲୋଚ୍‌କି ହୋଇଯାଏ । ପରେ ପରିସ୍ରା ବନ୍ଦ ହୋଇଯାଏ। ଠିକ୍ ସମୟରେ ଚିକିତ୍ସା ନ କଲେ ରୋଗୀ ମରିଯାଏ ।

ଅଜା—ହଇଜା ରୋଗ ହୁଏ କେମିତି ?

ଡାକ୍ତର—ଏହା ଏକ ଜୀବାଣୁ ଦ୍ୱାରା ହୋଇଥାଏ । ଏହି ଜୀବାଣୁଗୁଡ଼ିକ ଖାଲି ଆଖିକୁ ଦେଖାଯାଆନ୍ତି ନାହିଁ । ସାଧାରଣତଃ ବର୍ଷାରତୁ ଆରମ୍ଭରେ ଏ ରୋଗ ଦେଖାଯାଏ । ଏ ରୋଗ ବଢ଼ିବାର ମୂଳ କାରଣ ହେଉଛି ଅଧିକ ଗରମ ପାଣିର ଅଭାବ ।

ହଇଜା ଏକ ଜଳବାହିତ ରୋଗ । ରୋଗୀର ଝାଡ଼ା, ବାନ୍ତି ଓ ଲୁଗାପଟାରେ ଏହି ରୋଗର ଜୀବାଣୁ ରହନ୍ତି । ଏହି ଜୀବାଣୁମାନେ ପାଣି ସଂସ୍ପର୍ଶରେ ଆସି ଭଲ ପାଣିକୁ ଦୂଷିତ କରିଦଅନ୍ତି । ଏହି ପାଣିକୁ ଅନ୍ୟମାନେ ପିଇଲେ ଏ ରୋଗ ଆକ୍ରମଣ କରିଥାଏ ।

ଅଜା—ହଇଜା କଣ କେବଳ ପାଣି ଦ୍ୱାରା ସଂକ୍ରମିତ ହୁଏ ?

ଡାକ୍ତର—ଅପରିଷ୍କାର ପାଣି ହଇଜାର ବାହକ ଅଟେ । ଏତଦ୍‌ବ୍ୟତୀତ ମାଛିର ଗୋଡ଼ରେ ଲାଗିରହି ଜୀବାଣୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଆନ୍ତି । ପଚାସଢ଼ା, ଧୋଡ଼ା ହୋଇ ନଥିବା ଓ ମାଛି ବସିଥିବା ଖାଦ୍ୟ ଖାଇଲେ ଏ ରୋଗ ହୋଇଥାଏ ।

ଅଜା—ଏ ରୋଗର କଣ ପ୍ରତିକାର ନାହିଁ ?

ଡାକ୍ତର—ହଇଜା ରୋଗର ପ୍ରତିକାର ଡାକ୍ତରମାନେ ବାହାର କରିଛନ୍ତି । ହଇଜା ବ୍ୟାପିବା ଆରମ୍ଭ ହେବାମାତ୍ରେ ଏହାର ସୂଚନା ଡାକ୍ତରଖାନାରେ ଦେବା ଦରକାର । ଏହାକୁ ପ୍ରତିରୋଧ କରିବାପାଇଁ ହଇଜା ପ୍ରତିଷେଧକ ଟିକା ମାଗଣାରେ ଲୋକମାନଙ୍କୁ ଦିଆଯାଏ ।

ଏହା ବ୍ୟତୀତ ଆପଣମାନେ ବେଲହୁଁ ସାବଧାନ ହେବା ଦରକାର ।

ଅଜା—ହଇଜା ପାଇଁ କଣ ସବୁ ପ୍ରତିଷେଧକ ବ୍ୟବସ୍ଥା ଦରକାର ?

ଡାକ୍ତର—

୧) ସବୁବେଳେ ତଟକା ଓ ଗରମ ଖାଦ୍ୟ ଖାଇବା ଉଚିତ୍ । ବାସି କମ୍ବା ପଚ୍ସଢ଼ା ଫଳମୂଳ ଖାଇବ ନାହିଁ ।

୨) ଘରଦ୍ୱାର ପରିଷ୍କାର-ପରିଚ୍ଛନ୍ନ ରଖିଲେ ମାଛି ହୁଅନ୍ତି ନାହିଁ । ଖାଦ୍ୟପଦାର୍ଥ ଘୋଡ଼ାଇ ରଖନ୍ତୁ । ମାଛି ବସିବାକୁ ଦିଅନ୍ତୁ ନାହିଁ ।

୩) ପେଟରେ ଗୋଲମାଲ ବା ତରଳ ଝାଡ଼ା ହେଲେ ଡାକ୍ତରଙ୍କ ସହ ପରାମର୍ଶ କରନ୍ତୁ ।

୪) ଗ୍ରାମର କୂଅ, ପୋଖରୀ ଓ ଗାଡ଼ିଆମାନଙ୍କରେ ବ୍ଲିଚ ପାଉଡ଼ର ପକାନ୍ତୁ । ଏଗୁଡ଼ିକ ଯେପରି ଦୂଷିତ ନହୁଏ ସେଥିପାଇଁ ସମସ୍ତେ ଦୃଷ୍ଟି ଦିଅନ୍ତୁ ।

୫) ପିଇବା ପାଣିକୁ ଫୁଟାଇ ଥଣ୍ଡା କରି ପିଅନ୍ତୁ ।

୬) ହଇଜା ରୋଗୀର ଲୁଗାପଟା, ଝାଡ଼ା, ବାନ୍ତିରେ ଜୀବାଣୁ ଥାଆନ୍ତି । ଏଗୁଡ଼ିକ ପୋଖରୀ, ନଦୀ ଇତ୍ୟାଦିରେ ଧୁଅନ୍ତୁ ନାହିଁ । ଏଗୁଡ଼ିକୁ ଫୁଟା ପାଣିରେ ସିଝାଇ ବିଶୋଧିତ କରିବା ଦରକାର ? ଏହା କହି ଡାକ୍ତରବାବୁ ନିଜ ସ୍ଥାନକୁ ଫେରିଗଲେ ।

ଅଜା—ବର୍ତ୍ତମାନ ଆପଣମାନେ ଡାକ୍ତରବାବୁଙ୍କଠାରୁ ହଇଜା ବିଷୟରେ ଶୁଣିଲେ । ଆପଣମାନଙ୍କର କିଛି ପଚାରିବାର ଅଛି କି ?

ଅଜା ଓ ଡାକ୍ତରବାବୁଙ୍କ କଥା ଶୁଣି ଗାଁର ଲୋକମାନେ ପରସ୍ପର ମୁହଁକୁ ଚାହିଁଲେ । କେତେକ ବୁଢ଼ା ଲୋକ ମୁଣ୍ଡରେ ହାତ ଦେଲେ । ଯୁବକମାନେ ଛଟପୁରୁଛାପର ହେଲେ । ଜଣେ ଯୁବକ ଠିଆ ହୋଇ ପଚାରିଲା— ଅଜା, ଆମେ ବର୍ତ୍ତମାନ କଣ କରିବା ?



[ ପରିଷ୍କାର ନଳ କୂଅ ]

ଅଜା—ବର୍ତ୍ତମାନ ଆମେ ସମସ୍ତେ ମିଳିମିଶି ଗାଁର କୂଅ, ପୋଖରୀକୁ ସଫାରଖିବା, ନଳକୂଅକୁ ମରାମତି କରିବା । କଣ ସମସ୍ତେ ରାଜି ତ ?

ମଣିଆ– ଅଜାଙ୍କ କଥା ଠିକ୍ । ଆମ ଗାଁର ସବୁ ଯୁଆନ ଟୋକା ମିଶିଲେ ଏସବୁ କରିପାରିବେ ।

ଡାକ୍ତର—ଆଉ ଡେରି କାହିଁକି ? କାଲିଠାରୁ କୂଅ, ପୋଖରୀ ଓ ଗାଁର ସଫାକାମ ଆରମ୍ଭ କରିଦିଅ । ନଳକୂଅ ମରାମତି ପାଇଁ ବି.ଡି.ଓ.ଙ୍କୁ ମୁଁ ଜଣାଇ ଦେବି ।

ଅଜା—ବର୍ତ୍ତମାନ ସଭା ବନ୍ଦ ହେଲା । କାଲି ସମସ୍ତେ ସକାଳୁ ପୋଖରୀ ପାଖରେ ଏକାଠି ହେବା ।

## ପୋଖରୀ ଓ କୂଅ ସଫା ହେଲା

ରାତି ପାହି ଆସୁଥାଏ । ମଣିଆର ନିଦ ଭାଙ୍ଗିଲା । ସେ ଘର ଘର ବୁଲି ସବୁ ଯୁଆନ ଟୋକାଙ୍କୁ ଡାକିଲା । କୋଡ଼ି, କୋଦାଳ, ଟାଙ୍ଗିଆ, ଝୁଡ଼ି ଧରି ସମସ୍ତେ ପୋଖରୀ ପାଖରେ ପହଞ୍ଚିଗଲେ ।

ମଣିଆ କହିଲା—ଆମେ ଦଳ ଦଳ ହୋଇ କାମ କରିବା । ତାହେଲେ ଖୁବ୍ ଶୀଘ୍ର କାମ ଶେଷ ହେବ । ସମସ୍ତେ ମଣିଆ କଥାରେ ରାଜି ହେଲେ ।

ପ୍ରଥମ ଦଳ ପୋଖରୀ ଚାରିପାଖରେ ଥିବା ଅନାବନା ଗଛକୁ ହାଣି ସଫା କଲେ । ପୋଖରୀ ଚାରିପାଖ ସଫା ହୋଇଗଲା । ଆଉ ଗଛରୁ ପତ୍ର ପୋଖରୀରେ ପଡ଼ିବ ନାହିଁ ।

ଦ୍ୱିତୀୟ ଦଳ ପୋଖରୀରେ ଭାସୁଥିବା ଅନାବନା ଗଛର ପତ୍ର, ବୃନ୍ତ ଡ଼ାଆଦଳ ସବୁ ଟାଣିଆଣି ପକାଇଲେ । ପୋଖରୀ ପାଣି ପରିଷ୍କାର ଦେଖାଗଲା ।

ତୃତୀୟ ଦଳ ପୋଖରୀ ହୁଡ଼ା ମରାମତି କଲେ । ଭାଙ୍ଗି ଯାଇଥିବା ହୁଡ଼ାରେ ମାଟି ପକାଇ ପୋତି ଦେଲେ । ହୁଡ଼ାକୁ ଉଚ୍ଚା କରିଦେଲେ । ବାହାରର ପାଣି ଯେପରି ପୋଖରୀ ଭିତରକୁ ପଶିନପାରେ ସେଥିପାଇଁ ବ୍ୟବସ୍ଥା କଲେ ।



[ ଗାଁ ଲୋକେ ପୋଖରୀ ପରିଷ୍କାର ସଫା କରୁଛନ୍ତି ]

ଚତୁର୍ଥ ଦଳ ଧୋବା ତୁଠ, ଗୋରୁ ଗାଧୋଉଥିବା ତୁଠକୁ ଉଠାଇ ଦେଲେ । ତା ଜାଗାରେ ପାହାଚ ପାହାଚ କରି ପାଣି ନେବା ପାଇଁ ବ୍ୟବସ୍ଥା କରିଦେଲେ ।

ସମସ୍ତେ ମନ ଦେଇ ନିଜ ନିଜ କାମ କଲେ । କାମ ଶେଷ ହେବା ପୂର୍ବରୁ ପଧାନ ଅଜା ଆସି ପହଞ୍ଚିଗଲେ । କହିଲେ— ପିଲାମାନେ, ପୋଖରୀ ସଫା ହେଲା । ହେଲେ ଆମକୁ କେତେକ କଟକଣା କରିବାକୁ ପଡ଼ିବ ।

ସମସ୍ତେ ଏକ ସ୍ୱରରେ ପ୍ରଶ୍ନ କଲେ—କି କଟକଣା ? ଅଜା କହିଲେ—୧) ପୋଖରୀରେ କେହି ଗୋରୁଗାଈ ଗାଧୋଇବ ନାହିଁ । ୨) ପୋଖରୀ ହୁଡାରେ ମଳତ୍ୟାଗ କରିବ ନାହିଁ । ୩) ପୋଖରୀ ଭିତରେ ଲୁଗାପଟା ସଫା କରାଯିବ ନାହିଁ । ୪) ଧୋବା ଆଉ ଏଠି ଗୁଠ କରିବ ନାହିଁ ।

କଣ ସମସ୍ତେ ଏ କଟକଣା ମାନିବ ତ ?

ସମସ୍ତେ ଏକ ସ୍ୱରରେ କହିଲେ—ହଁ ଅଜା, ମାନିବୁ ।

ଅଜାଙ୍କ ଖୁସି କହିଲେ ନସରେ । ଅଜା କହିଲେ—ଚାଲ ବର୍ତ୍ତମାନ କୂଅ ପାଖକୁ ଯିବା । ଯୁଆନ ଟୋକାମାନେ ଆଗେ ଆଗେ ଚାଲିଲେ । ସବୁରି ମୁହଁ ହସ ହସ । ମେଳମିଶି ଗାଁ ପାଇଁ କାମ କରୁଛନ୍ତି । ଖୁସି ନହେବେ କେମିତ ।

କୂଅ ପାଖରେ ପହଞ୍ଚି ସେମାନେ ଦଳ ଦଳ ହୋଇ ଭାଗ ହୋଇଗଲେ ।

ପ୍ରଥମ ଦଳ କୂଅ ଚାରିପାଖରେ ଥିବା ଗଛକୁ କାଟି ଦେଲେ । ବରଗଛ ଓ ଓସ୍ତଗଛକୁ କାଟିବାକୁ କେତେକ ମନା କଲେ । ଅଜା କହିଲେ—କୂଅ ପାଣି ଦୂଷିତ ନହେବା ପାଇଁ ଏହାକୁ କାଟୁଛେ । ଏଣୁ ଏଥିରେ ପାପ ନାହିଁ । ଗାଁ ମୁଣ୍ଡରେ କୂଅଠାରୁ କିଛି ଦୂରରେ ବର ଓ ଓସ୍ତଗଛ ଲଗାଇବା । ସେଠି ପୂଜା କରିବା । ଅଜାଙ୍କ କଥା ସମସ୍ତଙ୍କ ମନକୁ ପାଇଲା । ବର ଓ ଓସ୍ତଗଛ କଟାଗଲା ।

ଦ୍ୱିତୀୟ ଦଳ କୂଅରୁ ପାଣି ବାହାର କରି ଶେଷ କରିଦେଲେ । କୂଅ ଭିତରେ ଥିବା ପଙ୍କ ବାହାର କଲେ । ପଚିପଣ

ଓ ବରଫଳ ସବୁ ବାହାର କଲେ । କୂଅ ଚାରିପଟେ ପଥର ବାଡ଼ରୁ ଅନାବନା ଗଛ କାଟିଦେଲେ ।

ଅନ୍ୟ ଗାଁରୁ ମିସ୍ତ୍ରିଙ୍କୁ ଡକାଇଥିଲେ । ମିସ୍ତ୍ରିମାନେ ଆସି ପହଞ୍ଚିଲେ । ଗ୍ରାମ ପଧାନର କୋଠାଘର ତୋଳା ହେଉଥିଲା । ଅନ୍ୟାନ୍ୟ କଥାମାନ ସେ କିଛି ସିମେଣ୍ଟ ଓ ଇଟା ଦେଲା । କୂଅର ଭଙ୍ଗା ପଟଟା ମରାମତ ହୋଇଗଲା । କୂଅ ଚାରିପଟେ ଉଚ୍ଚା ଚଉତରା ମଧ୍ୟ ତିଆରି ହୋଇଗଲା ।

ଗାଁ ଲୋକମାନେ ଖୁସି ହୋଇଗଲେ ।

ଏତିକବେଳେ ଡାକ୍ତରବାବୁ ଆସି ପହଞ୍ଚିଗଲେ । ସମସ୍ତେ ଡାକ୍ତରବାବୁଙ୍କୁ ନମସ୍କାର କଲେ । ଡାକ୍ତରବାବୁ କହିଲେ, ମୁଁ ଗୋଟାଏ କପିକଳ ନେଇ ଆସିଛି । ତାକୁ ଲଗାଇବା ବ୍ୟବସ୍ଥା କରନ୍ତୁ ।

ଲୋକମାନେ କୂଅ ପାଖରେ ଗାତ ଖୋଳି କପିକଳଟିକୁ ଲଗାଇ ଦେଲେ । କୂଅ ଚାରିପାଖ ସଫାସୁତୁରା ହୋଇ ଭାରି ସୁନ୍ଦର ଦେଖାଗଲା । ଡାକ୍ତରବାବୁ କହିଲେ—ମିଳିମିଶି କାମକଲେ ସବୁକାମ ସୁବିଧାରେ ହୋଇଯାଏ । ବର୍ତ୍ତମାନ କୂଅ ପୋଖରୀ ସଫା ହୋଇଗଲା । କିନ୍ତୁ କୂଅ ଓ ପୋଖରୀକୁ ସବୁବେଳେ ସଫା ରଖିବାକୁ ପଡ଼ିବ । ଆପଣମାନଙ୍କୁ କେତୋଟି ନିୟମ ମାନି ଚଳିବାକୁ ପଡ଼ିବ । କଣ ମାନିବେ ତ !

ସମସ୍ତେ ଏକ ସ୍ୱରରେ କହିଲେ—ହଁ, ଆମେ ସମସ୍ତେ ସବୁ ନିୟମ ମାନି ଚଳିବୁ ।

ଡାକ୍ତରବାବୁ କହିଲେ—କୂଅ ମୂଳରେ କେହି ବାସନ-କୁସନ ମାଜିବେ ନାହିଁ । ଲୁଗାପଟା ସଫା କରିବେ ନାହିଁ । ନିଜେ ଗାଧୋଇବ ନାହିଁ କିମ୍ୱା ଗାଈଗୋରୁଙ୍କୁ ଗାଧୋଇ ଦେବ ନାହିଁ ।



[ ଆଦର୍ଶ କୂଅ ]

କୂଅ ପାଖରେ ବଡ଼ଗଛ ଲଗାଇବ ନାହିଁ । ଖତ ଓ ଅଳିଆ ଗଦା କୂଅଠାରୁ ଦୂରରେ ରଖିବ । ଏସବୁ ନିୟମ ମାନି ଚାଲିଲେ କୂଅର ଜଳ ସବୁବେଳେ ସଫା ରହିବ ।

ଅଜା କହିଲେ—କଣ ସବୁ ବୁଝିଲ ତ ? ଏଥର ସବୁ ନିୟମ ମାନି ଚାଲିବ । ତା'ହେଲେ ତୁମକୁ ଜଳ ଯୋଗୁ ହଇରାଣ ହେବାକୁ ପଡ଼ିବ ନାହିଁ ।

ଡାକ୍ତରବାବୁ କହିଲେ—ପଞ୍ଚାୟତ ସମିତିରେ ଆଜି ଗୋଟିଏ ସଭା ଅଛି । ମୋତେ ଶୀଘ୍ର ପହଞ୍ଚିବାକୁ ପଡ଼ିବ । ମୁଁ ବର୍ତ୍ତମାନ ଯାଉଛି ।

ମୁଖିଆ ଜଣେ କହିଲେ—ଡାକ୍ତରବାବୁ, ଆଜି ସଂଧ୍ୟାରେ ଆପଣ ଆମ ଗାଁକୁ ଆସିବେ । ଆଜି ଆମ ଗାଁରେ ସମସ୍ତେ ମିଶି ଭୋଜି କରିବାକୁ ଠିକ୍ କରିଛୁ ।

ଅଜା କହିଲେ—ଡାକ୍ତରବାବୁ ପଞ୍ଚାୟତ ଅଫିସରୁ ଫେରିଲାବେଳେ ଏ ଗାଁ ଦେଇ ଚାଲିଯିବେ ।

ଡାକ୍ତରବାବୁ କହିଲେ—ଆପଣମାନେ ଯେତେବେଳେ କହୁଛନ୍ତି ମୋତେ ଆସିବାକୁ ପଡ଼ିବ ।

ସମସ୍ତେ ଖୁବ୍ ଖୁସି ହେଲେ । କହିଲେ—ଏଭଳି ଡାକ୍ତରବାବୁ ଆମେ କେବେ ଦେଖି ନଥିଲୁ ।

## ଜଳ କିପରି ବିଶୁଦ୍ଧ ହୁଏ

ସଂଧ୍ୟାବେଳକୁ ସମସ୍ତେ ମେଳଣ ପଡ଼ିଆରେ ବସିଥିଲେ । ସମସ୍ତେ ଆଜି ଖୁସି । ଗାଁର ପୋଖରୀ, କୂଅ, ରାସ୍ତାଘାଟ ସବୁ ସଫା ହୋଇଯାଇଛି । ଗାଁର ସବୁ ଲୋକ ଏକଜୁଟ ହୋଇ କାମ କରିଛନ୍ତି । ସମସ୍ତେ ପଧାନ ଅଜାଙ୍କୁ ଓ ଡାକ୍ତରବାବୁଙ୍କୁ ପ୍ରଶଂସା କରିବାରେ ବ୍ୟସ୍ତ ।

ଡାକ୍ତରବାବୁ ଆସି ପହଞ୍ଚିଲେ । ଗ୍ରାମଆଡ଼କୁ ଗ୍ରହଁଲେ । କିନ୍ତୁ ପଧାନ ଅଜାଙ୍କୁ ନ ଦେଖି ପଗ୍ଚରିଲେ—ପଧାନ ଅଜା ଗଲେ କୁଆଡ଼େ ?

ଅଳ୍ପ ସମୟ ପରେ ପଧାନ ଅଜା ଆସି କହିଲେ—ଏଇ ବେଳକି ଭାତ କଥା ଟିକେ ବୁଝୁଥିଲି । ଡାକ୍ତରବାବୁ, ଆପଣଙ୍କ ଉପରେ ଗାଁର ସବୁ ଲୋକ ଖୁସି । ସମସ୍ତେ କହୁଛନ୍ତି ଆପଣ ଯେମିତି ଏଇ ଗାଁର ଲୋକ ।

ଡାକ୍ତରବାବୁ କହିଲେ—ପଧାନ ଅଜା, ମୁଁ ବି ଗୋଟିଏ ଗାଁରୁ ଆସିଛି । ପାଠ ପଢ଼ି ସିନା ଡାକ୍ତର ହୋଇଛି, ହେଲେ ତୁମମାନଙ୍କ ଭିତରୁ ମୁଁ ବି ଜଣେ । ଆମ ଡାକ୍ତର ଲୋକେ ସମସ୍ତଙ୍କର ଭାଇଭଉଣୀ ଭଳି ।

ଗାଁ ଲୋକମାନେ ଡାକ୍ତରବାବୁଙ୍କୁ ଧନ୍ୟ ଧନ୍ୟ କଲେ ।

ମଣିଆ ଭୋଜି ରାନ୍ଧୁଥିଲା । ସେ ଆସି ଡାକ୍ତରବାବୁଙ୍କ ପାଖରେ ପହଞ୍ଚିଲା । ସେ ଡାକ୍ତରବାବୁଙ୍କୁ କହିଲା—ଡାକ୍ତରବାବୁ, ଆପଣଙ୍କ ଡାକ୍ତରଖାନାରେ ଗୋଟିଏ ବୋର୍ଡ ଝୁଲି ହୋଇଛି । ସେଥିରେ ଲେଖା ହୋଇଛି, ବିଶୁଦ୍ଧ ପାଣି ପିଅନ୍ତୁ । ଏ ବିଶୁଦ୍ଧ ପାଣି କଅଣ ?

ଡାକ୍ତରବାବୁ କହିଲେ—କୂଅ, ପୋଖରୀକୁ ପରିଷ୍କାର ପରିଚ୍ଛନ୍ନ ରଖିଲେ ମଧ୍ୟ ବେଳେ ବେଳେ କିଛି ରୋଗ ଜୀବାଣୁ ଜଳରେ ରହିଯାଆନ୍ତି । ଜଳ ଯେତେବେଳେ ମଇଳା ପଦାର୍ଥ ଓ ଜୀବାଣୁ ମୁକ୍ତ ହୁଏ ତାକୁ ବିଶୁଦ୍ଧ ଜଳ କହନ୍ତି ।

ଅଜା ପଗ୍ଚରିଲେ—ଜଳ କିପରି ବିଶୁଦ୍ଧ ହୁଏ ।

ଡାକ୍ତରବାବୁ କହିଲେ—କୂଅ ବା ପୋଖରୀର ଜଳକୁ ପ୍ରଥମେ ସଫା କନାରେ ଛାଣି ଦିଅନ୍ତୁ । ଏପରି କଲେ ଜଳରେ ଭାସୁଥିବା ମଇଳା ପଦାର୍ଥ ବାହାରିଯାଏ । ଛଣା ହୋଇଥିବା ପାଣିକୁ ଫୁଟାଇ ଦିଅନ୍ତୁ । ପାଣିକୁ ଫୁଟାଇବା ଦ୍ୱାରା ରୋଗ ଜୀବାଣୁ ମରିଯିବେ । ଫୁଟାଯାଇଥିବା ପାଣିକୁ ଥଣ୍ଡା କରନ୍ତୁ । ତା'ପରେ ଛାଣି ମାଠିଆରେ ଢୋଳାଇ ରଖନ୍ତୁ । ଏହି ପାଣିକୁ ବିଶୁଦ୍ଧ ପାଣି କହନ୍ତି ।

ମଣିଆ କହିଲା – ସେଦିନ ସ୍କୁଲରେ ସାରମାନେ ପାଣିଛଣା ଯନ୍ତ୍ର ତିଆରି କରୁଥିଲେ । ଏ ପାଣିଛଣା ଯନ୍ତ୍ର କି କାମକରେ ?

ଡାକ୍ତରବାବୁ କହିଲେ—ଏ ତ ଖୁବ୍ ସହଜ କଥା । ଏଥିପାଇଁ ତିନିଖଣ୍ଡ ବଡ଼ ବାଉଁଶ, ଅଳ୍ପ କେତେଖଣ୍ଡ ଛୋଟ ବାଉଁଶ ଓ ଚାରୋଟି ମାଠିଆ ଦରକାର । ଏସବୁ ଆପଣ ସହଜରେ ଯୋଗାଡ଼ କରିପାରିବେ ।

ପ୍ରଥମେ ବଡ଼ ବାଉଁଶ ତିନିଖଣ୍ଡ ମଝିରେ ସରୁ ବାଉଁଶ ଲଗାଇ ଚାରୋଟି ଥାକ କରନ୍ତୁ । ପ୍ରତ୍ୟେକ ଥାକରେ ଗୋଟିଏ ଲେଖାଏଁ ମାଠିଆ ରଖନ୍ତୁ । ତଳ ମାଠିଆ ବ୍ୟତୀତ ପ୍ରତ୍ୟେକ ମାଠିଆ ତଳେ ଗୋଟିଏ ଲେଖାଏଁ ସରୁକଣା କରନ୍ତୁ । ଏହି କଣାରେ ନଳିକୁଟା ଖଣ୍ଡିଏ ଲେଖାଏଁ ରଖନ୍ତୁ । ସବା ଉପର ମାଠିଆରେ ଗରମ ପାଣି ରଖନ୍ତୁ । ତା ତଳ ବା ଦ୍ୱିତୀୟ ମାଠିଆରେ ପରିଷ୍କାର ଅଙ୍ଗାର ରଖନ୍ତୁ । ତୃତୀୟ ମାଠିଆରେ ପରିଷ୍କାର ବାଲି ରଖନ୍ତୁ । ଚତୁର୍ଥ ମାଠିଆରେ କିଛି ରଖନ୍ତୁ ନାହିଁ । ଏଇଟି ହେଲା ପାଣିଛଣା ଯନ୍ତ୍ର ।

ଅଜା ପଚ୍ଚାରିଲେ—ଏ ପାଣି ଛଣା ଯନ୍ତ୍ରରେ ପାଣି କିଭଳି ବିଶୁଦ୍ଧ ହେବ ?



[ ପାଣି ଛଣା ଯନ୍ତ୍ର ]

ଡାକ୍ତରବାବୁ କହିଲେ—ପ୍ରଥମେ ପାଣିକୁ ଫୁଟାଇ ପ୍ରଥମ ମାଠିଆରେ ରଖି ଦିଅନ୍ତୁ । ଏହି ପାଣି ଦ୍ୱିତୀୟ ଓ ତୃତୀୟ ମାଠିଆରେ ଛାଣି ହୋଇ ସବା ତଳ ମାଠିଆରେ ଜମା ହୋଇ-ଯିବ । ଏହି ପାଣି ବିଶୁଦ୍ଧ ପାଣି । କାରଣ ପ୍ରଥମେ ପାଣିକୁ ଫୁଟାଇବାରୁ ସବୁ ରୋଗ ଜୀବାଣୁ ମରିଯାଆନ୍ତି । ଦ୍ୱିତୀୟ ମାଠିଆ ଓ ତୃତୀୟ ମାଠିଆର ଅଙ୍ଗାର ଏବଂ ବାଲି ଦ୍ୱାରା ପାଣିରୁ ମଇଳା, ରୋଗ ଜୀବାଣୁ ଆଦି ଛାଣି ହୋଇଯାଏ । ତେଣୁ ସବା ତଳ ମାଠିଆରୁ ବିଶୁଦ୍ଧ ପାଣି ମିଳେ ।

ଗାଁ ମୁଖିଆ କହିଲେ—ଏ ତ ଖୁବ୍ ସହଜ ଉପାୟ । ଗାଁରେ ବାଉଁଶ, ଅଙ୍ଗାର, ମାଠିଆ, ବାଲି ସବୁ ମିଳୁଛି । ଆମେ ସବୁ ଏପରି କରି ପାଣି ପିଇବୁ ।

ଡାକ୍ତରବାବୁ କହିଲେ—ରୋଗ ଜୀବାଣୁକୁ ମାରିବା ପାଇଁ କେତେକ ରାସାୟନିକ ପଦାର୍ଥ ମଧ୍ୟ ବ୍ୟବହାର କରାଯାଏ । ତୁମ ଗାଁ କୂଅରେ ବେଳେ ବେଳେ ବ୍ଲିଚିଂ ପାଉଡ଼ର ପକାଯାଏ ।

ମଣିଆ କହିଲା—ହଁ, ପଞ୍ଚାୟତର ଲୋକମାନେ ଆସି ପକାଇ ଯାଆନ୍ତି ।

ଡାକ୍ତରବାବୁ କହିଲେ—ବ୍ଲିଚିଂ ପାଉଡ଼ର ପକାଇଲେ ରୋଗ ଜୀବାଣୁ ଜଳରୁ ମରିଯାଆନ୍ତି । ଏହା ଛଡ଼ା ପଟାସିୟମ ପରମାଙ୍ଗାନେଟ୍ ଓ କ୍ଲୋରିନ୍ ଗ୍ୟାସ୍ ମଧ୍ୟ ବ୍ୟବହାର କରାଯାଏ । ସହରରେ ଜଳ ଯୋଗାଣ ପାଇଁ ଏସବୁ ବେଶୀ ବ୍ୟବହାର କରାଯାଏ ।

ଅଜା କହିଲେ—ଡାକ୍ତରବାବୁ, ସହରରେ ତ ବହୁତ ଲୋକ । ସେମାନଙ୍କୁ ଏତେ ବିଶୁଦ୍ଧ ପାଣି କେମିତି ଯୋଗାଯାଏ ?

ଡାକ୍ତରବାବୁ କହିଲେ—ସହରରେ ଜଳଯୋଗାଣ ପାଇଁ ବଡ଼ ବଡ଼ ପାଣି ଟାଙ୍କି ରହିଛି । ଏହି ଟାଙ୍କି ଗୁଡ଼ିକ ବହୁତ ଉଚ୍ଚାରେ ଥାଏ । ଏହି ଟାଙ୍କିରୁ ମୋଟା ମୋଟା ପାଇପ୍ ବିଭିନ୍ନ ସାହି ବା ଗଳିକୁ ଯାଇଥାଏ । ଏହି ମୋଟା ପାଇପ୍‌ରୁ ସରୁ ସରୁ ପାଇପ୍ ପ୍ରତି ଘରକୁ ଯାଇଥାଏ । ଏହି ପାଇପରୁ ଲୋକମାନେ ଜଳ ପାଆନ୍ତି ।

ଅଜା ପଚାରିଲେ—ଏ ପାଣି ଆସେ କେଉଁଠୁ ?

ଡାକ୍ତରବାବୁ କହିଲେ—ସହର ପାଖରେ ଥିବା ନଦୀ ବା ଗଭୀର ନଳକୂଅରୁ ପମ୍ପ ସାହାଯ୍ୟରେ ଜଳ ସଂଗ୍ରହ କରାଯାଏ । ତାପରେ ସେହି ପାଣିକୁ ବିଶୋଧନାଗାରକୁ ଛାଡ଼ି ଦିଆଯାଏ । ସେଠାରେ ଅପରିଷ୍କାର ପଦାର୍ଥ ଗୁଡ଼ିକ ଛାଣି ହୋଇଯାଏ । ଏହି



[ ସହରରେ ବିଶୁଦ୍ଧ ପାଣି ଯୋଗାଣ ]

ପାଣିକୁ ବ୍ଲିଚିଂ ପାଉଡ଼ର, କ୍ଲୋରିନ ଗ୍ୟାସ ଦେଇ ବିଶୋଧନ କରାଯାଏ । ବିଶୋଧିତ ପାଣିକୁ ପୁଣି ପମ୍ପଦ୍ୱାରା ଉଚ୍ଚରେ ଥିବା ପାଣି ଟାଙ୍କିକୁ ପଠାଯାଏ । ଏହି ପାଣି ଲୋକମାନେ ପାଇପ୍ ସାହାଯ୍ୟରେ ସଂଗ୍ରହ କରନ୍ତି ।

ଅଜା କହିଲେ—ଡାକ୍ତରବାବୁ ଆଜି ଆମକୁ ନୂଆ କଥାଟିଏ ଶିଖାଇଲେ । ମିଳିମିଶି କାମ କଲେ ବିପଦ ଆସେ

ନାହିଁ । ଆମେ ସମସ୍ତେ ମିଳମିଶି କାମ କରିବାରୁ ଆମର ପିଇବା ପାଣି ଅସୁବିଧା ଦୂର ହେଲା । ଆମେ ଯଦି ସମସ୍ତେ ଚେଷ୍ଟା କରିବା ସବୁବେଳେ କୂଅ ପୋଖରୀ ପରିଷ୍କାର ରହିବ । ଆମକୁ ଆଉ ରୋଗ ସହଜରେ ଆକ୍ରମଣ କରିପାରିବ ନାହିଁ ।

ଗାଁର ଜଣେ ମୁଖିଆ ଆସି ପହଞ୍ଚିଲେ । କହିଲେ—ଭୋଜି ରନ୍ଧା ସରିଲାଣି । ଆସନ୍ତୁ ଖାଇ ବସିବା ।

ସମସ୍ତେ ମିଶି ଭୋଜି ଭାତ ଖାଇଲେ । ଭୋଜି ଶେଷରେ ଡାକ୍ତରବାବୁ କହିଲେ—ପଧାନ ଅଜା ନାତି ବାହାଘରକୁ ଆସି ଥିଲେ । ନାତି ବାହାଘର ସାରି ଏ ଗାଁର ପିଇବା ପାଇଁ ପରିଷ୍କାର ପାଣିର ବି ସୁବିଧା କରିଦେଲେ ।

ଗାଁର ମୁଖିଆ କହିଲେ—ହଁ ଡାକ୍ତରବାବୁ ! ପଧାନ ଅଜା ଆଜି ଆମର ଆଖି ଖୋଲି ଦେଲେ । ଆପଣଙ୍କ ସହ ମିଶି ଆମ ପାଇଁ ପିଇବା ପାଣିର ବ୍ୟବସ୍ଥା କରିଦେଲେ । ଆମେ ଆପଣ-ମାନଙ୍କର ଉପକାର ଭୁଲି ପାରିବୁ ନାହିଁ ।

ଡାକ୍ତରବାବୁ କହିଲେ—ରାତି ଡେରି ହେଲାଣି । ଚାଲ, ଏଥର ଯିବା । ଡାକ୍ତରବାବୁ ଚାଲିଗଲେ । ତା' ପରଦିନ ସକାଳୁ ପଧାନ ଅଜା ଗାଁକୁ ଫେରିଲେ ।

## ମନେରଖ

* ପିଇବା ପାଣି କୂଅ, ନଦୀ, ଝରଣା ଓ ନଳ କୂଅରୁ ମିଳିଥାଏ ।

* ଜଳ ବିନା ମଣିଷ ବଞ୍ଚି ପାରିବ ନାହିଁ । ଜଳ ଆମର ଖାଦ୍ୟ ହଜମ କରିବାରେ ସାହାଯ୍ୟ କରେ ଓ ରକ୍ତରେ ମିଶିଯାଇଥାଏ ଏବଂ ଆମର ଦେହରୁ ଝାଳ ଓ ମୂତ୍ର ଦ୍ୱାରା ମଇଳା ବାହାର କରିଦେଇଥାଏ ।

* ପୋଖରୀରେ ଗାଧୋଇବା, ପୋଖରୀ ହୁଡ଼ାରେ ଝାଡ଼ା ଫେରିବା, ବାସନ ମାଜିବା, ଧୋବା ଭୁଠ କରିବା, ଗାଈ ଗୋରୁ ଗାଧୋଇବା, ଖୋଟ ଛଣି କଷାଇବା ଯୋଗୁଁ ପୋଖରୀ ଜଳ ଦୂଷିତ ହୁଏ ।

* କୂଅ ପାଖରେ ଗାଧୋଇବା, ବାସନ ମାଜିବା, ଲୁଗା ସଫା କରିବା, ଗାଈଗୋରୁ ଗାଧୋଇବା, ଖତ ଗଦା କରିବା, ବଡ଼ ଗଛ ଲଗାଇବା, ମଇଳା ଜମା କରିବା ଦ୍ୱାରା କୂଅର ଜଳ ଦୂଷିତ ହୁଏ ।

* ଦୂଷିତ ଜଳ ପିଇଲେ ହାଇଜା, ଆମାଶୟ, ନାଳଝାଡ଼ା, ଟାଇଫଏଡ୍ ଇତ୍ୟାଦି ସଂକ୍ରାମକ ରୋଗ ହୁଏ ।

* ହାଇଜା, ଆମାଶୟ, ନାଳଝାଡ଼ା, ଟାଇଫଏଡ୍ ରୋଗ ହେଲେ ଗାଁ ନିକଟରେ ଥିବା ଡାକ୍ତରଖାନାରେ ଖବର ଦିଅନ୍ତୁ । ରୋଗୀର ଶୀଘ୍ର ଚିକିତ୍ସା କରାନ୍ତୁ । ରୋଗୀର ଲୁଗାପଟା, ବାସନକୁସନକୁ ପୋଖରୀ, ନଦୀ ବା କୂଅ ନିକଟରେ ଧୁଅନ୍ତୁ ନାହିଁ ।

* ଗାଁର କୂଅ ଓ ପୋଖରୀର ପରିବେଶକୁ ପରିଷ୍କାର ରଖନ୍ତୁ । ଜଳ ଯେପରି ଦୂଷିତ ନହୁଏ ସେଥିପାଇଁ ନଜର ଦିଅନ୍ତୁ ।

* ନଳ କୂଅ ବା କୂଅର ଜଳକୁ ବିଶୋଧନ କରି ପିଅନ୍ତୁ ।

* ନିୟମିତ ଭାବରେ କୂଅ ପୋଖରୀରେ ବ୍ଲିଚିଂ ପାଉଡ଼ର ପକାନ୍ତୁ ।

---